# ହନୁମାନ ଚଉତିଶା

ପ୍ରକାଶକ - ଶ୍ରୀରାଧାରମଣ ପୁସ୍ତକାଳୟ

* ନୂତନ ମୁଦ୍ରଣ *



ପ୍ରାପ୍ତିସ୍ଥାନ :-

ଶ୍ରୀରାଧାରମଣ - ପୁସ୍ତକାଳୟ

ବାଲୁବଜାର, କଟକ ।

ପୋ: ଚାନ୍ଦନୀଚୌକ ।

ମୂଲ୍ୟ ଟ ୦ /୬ ଛଅ ପଇସା ମାତ୍ର

ମୂଲ୍ୟ - [illegible]

# ହନୁମାନ ଚଉତିଶା



## ରାଗ—କାମୋଦୀ

କହେ ଜନକଦୁହିଅ ଶୁଣ ପବନପୁଅ କିରୂପେ ସିନ୍ଧୁ ପାରି ହେଲୁ । କେମନ୍ତେ ଲଙ୍କେ ଅସି ଖୋଜିଲୁ ବନେ ପଶି ଚାହୁଁ ମୋ ବାରତା ପାଇଲୁରେ । ହନୁମାନ । କି କହୁଛନ୍ତି ରଘୁବୀର । କହ ତୁ ନ କରି ଉଚ୍ଛୁର । କପରି ବେନି ଭାଇ ଚାହିଁ ଅଛନ୍ତି ରହି କୁଶଳ ସବୁ କି ତାଙ୍କର ରେ । ହନୁମାନ । ୧ । ଖର ବରଷା ଶୀତ ବୁଲନ୍ତି ରଘୁନାଥ ଖଣ୍ଡିଏ ଚାହିଁ ଘର ନାହିଁ । ଖାଇବାକୁ କେବଳ ବନର ଫଳମୂଳ ଝମେ ଛନ୍ତି ନା ବେନିଭାଇ ରେ । ହନୁମାନ । ଖଳ କଥାରେ ରାମ ହଣ୍ଡ । ଖଳ ପାଖନ୍ତି ସେ ମନ୍ଥରୀ । ଖୋଜିଣ ମୁନିମାନେ ଯାକୁ ନ ପାନ୍ତି ଧ୍ୟାନେ ଅଇଲେ ରାଜ୍ୟପଦ ଛାଡ଼ି ରେ । ହନୁମାନ । ୨ । ଗିରି କାନନ ଲତା ବୁଲି ବିପ୍ତୁ ଅବସ୍ଥା ଅଉ କି ଦୁଃଖ ଏଥୁ ହେବ । ଗଲେ ମୃଗ ଗୋଡ଼ାଇ ମୋ କର୍ମେ ଏ ଅଛଇ ଗଢ଼ିଥିଲା ସିନା ଦଇବରେ ହନୁମାନ । ଗାଢେ ବହୁତ ତପ କଲି । ଗିରିଜାପତିଙ୍କୁ ସେବିଲି । ଗରୁ ଏ ଅପମାନ କେତେବେ ହେଲା ଘଟନ କପାଳ ଫଳ ମୁଁ ଭୁଞ୍ଜିଲି ରେ । ହନୁମାନ । ଘରଣୀ ଶ୍ରୀରାମର ଘେନିଥିଲେ ସଙ୍ଗର ଦଇବ ତାହା ଛଡ଼ାଇଲା । ଘଡ଼ିଏ ନ ଦେଖିଲେ ଘାବରା ହେଉଥିଲେ ବିଚ୍ଛେଦ ସହିବାକି ହେଲା ରେ । ହନୁମାନ । ଘୋର ବରଷାକାଳେ ରାମ । ଘନ ଗହନ ଗାଢ଼ ତମ । ଘେନି ସଙ୍ଗେ ଲକ୍ଷ୍ମଣ କରେ କୋଦଣ୍ଡ ବାଣ ଚାହିଁ ସେ କରନ୍ତି ବିଶ୍ରାମ ରେ । ଙଜ ଙଜର ଅଧି ନାଶିଲେ ଝମାଜଧି ଯା ଧନୁ ଟଙ୍କାର ଶୁଣିଲେ । ଅସାଧ ରାଜାମାନେ ଭୟେ କରନ୍ତି ମନେ ଧରଣୀ କମ୍ପଇ ବ୍ୟାକୁଳେ ରେ । ହନୁମାନ । ନ ଯାଇ

ରହିଛ ରାବଣ । କରସ ଦେଖି ଦଶାନନ । କର୍ଣ୍ଣେ ଅଣିବଧି
ନଣାଚରୀ ସୁନ୍ଦରୀ ଭଗାଇ ରଖିଛ ଏ ସ୍ଥାନରେ ରେ । ୫ । ଚତୁର
ଶିରୋମଣି ରଘୁ କୋଦଣ୍ଡପାଣି ଚଢ଼ି ଗୃଢ଼କ ଜଳଧର । କେନ୍ତେ
ଦ୍ଵିଜ ଭୟ ଚପଳେ ହୋଏ କ୍ଷୟ ଜ୍ୟୋତିସ୍ୱରୂପ ରଘୁବୀର ରେ ।
ହନୁମାନ । ଶୃପଧାଙ୍କ ଶୁଣ ଯଣ । ଚତୁର୍ଦ୍ଦଶ ଲୋକେ ପ୍ରକାଶ
ଗୃହେଁ ଗୃହେଁ ଲଙ୍କେଶ ସବଂଶେ କରି ନାଶ ମହିମା କରିବେ ପ୍ରକାଶ
ରେ ହନୁମାନ । ୬ । ଘୋର ଦୁଷ୍ଟ ରାବଣ ଜଡ଼ିଲ ଲକ୍ଷ୍ମୀ ଜାଣ ଛନ୍ଦ
ପାଶ୍ୱର ରାମଠାର । ଛେଳ ସମାନ ହୋଇ ସିଂହେ ବାନ୍ଧ ରଖଇ
ଛିଡ଼ କ ଯିବ ତାଙ୍କ ଶିର ରେ । ହନୁମାନ । ଛେଦବେ କଣ୍ଠେଁ
ଦଶଶିର । ଘୋରକାର ହେବ ଏ ପୁର । ଦୁର୍ବଳ ପରନାରୀ ଏଥୁଁ
ନୋହିବ ପାର ଛଡ଼ିଲ ଅଯୁତ ଏହାର ରେ ॥ ଜଣାଅ ମୋ ଉଦନ୍ତ
ଜାଣିଲେ ରଘୁନାଥ ଯେବେ ଅସି ଲକ୍ଷ୍ମଣ ସହ । ଜଣି ଦୁଷ୍ଟ
ଦାନବ ସବଂଶେ ନାଶି ସର୍ବ ହରିବେ କୁତ୍ସିର ଦୁଃସହ ରେ ।
ହନୁମାନ । ଜଗନ୍ନାଥଙ୍କୁ ବେଗେ ଅଣ । ଜାଣ ତୁ ବାବୁ ମୋ
ବଚନ । ଜୟ ବିଜୟ ଦୁଇ ଶାପୁ ରାକ୍ଷସ ହୋଇ ଜାତ ରାବଣ
କୁମ୍ଭକର୍ଣ୍ଣ ରେ । ୮ । ଝାଡ଼ବନରେ କେତେ ମୋର ସ୍ୱାମୀ
ସଙ୍ଗତେ ଅଛନ୍ତି ତୋହର ସମାନ । ଝଟକରିଣ ବାଣୀ ପବନସୁତ
ଭଣୀ ଅଠରପଦ ଯୋଦ୍ଧାଗଣ ଗୋ । ଠାକୁରାଣୀ । ଝଡ଼ପର୍ବତେ ମଣ୍ଡ
ବଳ । ଶବଦେ ସିନ୍ଧୁର ଉଛୁଳ । ଝସକେତନ ସାଠି ପଞ୍ଚାଶ ଯୂଥପତି
ପୁଣ ଅସଂଖ୍ୟ ଋକ୍ଷକୁଳ ଗୋ । ଠାକୁରାଣୀ । ନାରାୟଣ ସୁମର ହେଳେ
ସମୁଦ୍ର ପାର ଅଇଲି ତୁମ୍ଭ ଛାମୁର । ନିର୍ଧୂମ ଅଗ୍ନି ପ୍ରାୟ ଅଛନ୍ତି
ତେଜୋମୟ ରାବଣ କେତେକ ମାତର ଗୋ । ଠାକୁରାଣୀ । କଷ୍ଟେ
ତୋ ଅଣ୍ଡ ପରମାଣ । ଲଙ୍କା କରିବେ ରଣଭଣ । ନଖେ ମେରୁ
ବିଦାରି ଦୁଷ୍ଟଦଳନ କରି ଏମନ୍ତ ଯୋଗ୍ୟ ଜଣ ଜଣ ଗୋ । ୧୦ ।
ଟେକିଣ ଲଙ୍କାପୁରୀ ନେଇ ସମୁଦ୍ର ପାରି ମାରି ପାରଇ ରାବଣକୁ ।
ଟାଣ କହିବ କେତେ ହସ ମାତ୍ରିଇ ମୋତେ କ ଯୋଦ୍ଧା ରାବଣ

ଅମ୍ଭଙ୍କୁ ଗୋ । ଠାକୁରାଣୀ । ଚକ୍ରଧରଙ୍କୁ କର ପୂଜା । ଟାଣ କରଇ
ଦୈର୍ଯ୍ୟରାଜା । ଟିକିଏ ଛଳମ୍ଭ ତ କ୍ରୁହକ୍ତା ଅଗୋ ମାତ ଆଦେଶ
ନ ଦେଲେ ପ୍ରଭୁ ଯା ଗୋ । ଠାକୁର ରଘୁନାଥ ବାଳକ କଲେ
ହତ ତା ତର୍ହୁଁ ଏ କ କନକନ୍ତ । ଠିକେ ବଳ ତାହାର ନବ କୋଟି
କୁଞ୍ଜର ଏକ କାଣ୍ଡରେ କଲେ ହତ ଗୋ । ଠାକୁରାଣୀ । ଠିକେ କମଳା
ତୁମ୍ଭେ ସତ । ଘଣସୁନ୍ଦର ଜଗନ୍ନାଥ । ଠାକୁର ଶ୍ରୀରାମଙ୍କ ତୁମ୍ଭେ
ସେ ଯୋଗ୍ୟ ଏକା ଅଛ କେ ହୋଇବ ଏମନ୍ତ ଗୋ । ୧୨ । ତାଙ୍କ
କହିଲେ ରାମ ଶୁଣ ରେ ହନୁମାନ ସୀତାଙ୍କୁ ଠାବ କର ଅସ । ତାହାଙ୍କ
କରେ ବାଣ ବାମକରେ କୋଦଣ୍ଡ ଦାଢ଼ୀ ଅଛନ୍ତି ଯୋଡ଼ କଣ
ଗୋ । ଠାକୁରାଣୀ । କେଉଁ ଅଇଲ ବାରିନିଧି । କେଉଁ ପକ୍ଷୀଙ୍କ
ଗଡ଼ସନ୍ଧି । ଡ଼ଙ୍ଗର ସ୍ଥାନ ହୋଇ ରୂପକୁ ବଦଳାଇ ଲଙ୍କା ବୁଲିଲି
କନ୍ଦ କନ୍ଦ ଗୋ । ୧୩ । ତମ ପସରୁ ହାଠ କରନ୍ତୁ ଦଶମାଥ ଛାଳେ
ନାଶିବେ ତୁମ୍ଭ ଷଣ୍ଢ । ତୋଇ ମୁଁ ଯିବ ଲଙ୍କା କରାଇ ମୁଣ୍ଡି ଦକା
ଦଅ ସେ ଅଣ୍ଟ ମହାସତୀ ଗୋ । ଠାକୁରାଣୀ । ତମ ମୁଁ ନ କହୁଛୁ
ମାତ । ତମାଳ ଦେବ ଦେଖ ହତ । ତାଳେ କଷ୍ଟ ତୁମ୍ଭର ଅକର୍ମ
ହେବ ଦୂର ଥୋକେ ରାକ୍ଷସ ହେବେ ହତ ଗୋ । ଅଗଦ ଅଦ
ବୀର ପ୍ରଭୁଙ୍କ ପରଶୁର ପ୍ରଚଣ୍ଡ କର କହୁଛନ୍ତି । ଅସ ଯାଇ ମାରୁତି
ଠାବ କର ଝଁଠଢ ରୂପୁ ମାର ଲଭିବୁଁ ସଙ୍ଗ ଗୋ । ଠାକୁରାଣୀ ।
ଅପଣା ବଢ଼ାଇ ନ କହୁ । ଅଇଲ ତୁମ୍ଭ ହେଠପାଇଁ । ଅସି କେଢ଼ିବେ
ଏହୁ ଲଙ୍କାରୁ ବେଗେ ସେହୁ ରଘୁନାଥଙ୍କ ଅଣ୍ଟ ପାଇ ଗୋ । ୧୫ ।
ତାଙ୍କ ଶରଧା ଯେତେ ତା ମୁଁ କହିବ କେତେ ତୁମ୍ଭ ଚିନ୍ତାରେ ତନୁ
କ୍ଷୀଣ । ତାପେ ତାପିତ ଦେହ ଦଶରଥଙ୍କ ପୁଅ ତୋ ବନ୍ଧୁ ନ ସରଇ
ଦନ ଗୋ । ଠାକୁରାଣୀ । ତୃପତ ହୋଇ ତୁମ୍ଭେ ଥାଅ । ତର୍ଜ୍ଜଣୀମୁଦ୍ରିକା
ଏ ନିଅ । ତୁମ୍ଭର କଷ୍ଟମାନ କରିବ ନିବେଦନ ଅନ ସନ୍ଦେଶମାନ ଦଅ
ଗୋ । ଥିର ବାଣୀ କହନ୍ତି ତାପସୀ ନ ଜାଣନ୍ତି ଯାଅ ତୁ ପବନ କୁମର
ଥିଲା ଯୌ ଶିରୋମଣି ହସ୍ତେ ଘେନଲେ ପୂର୍ଣି ସଙ୍କେତ ହେଲେ ତା

କସ୍ତୁର ରେ । ହନୁମାନ । ଥୋଇବୁ ଚରଣେ ପ୍ରଭୁର । ମୁଦ୍ରିର ମଣିବେ ପ୍ରାଣେଶ୍ୱର । ଥିବ ଯେତେକ ଦିନ ତାଙ୍କୁ କରି ସ୍ମରଣ ଏ ଦେହ ଦେଉଛୁ ଅସ୍ଥିର ରେ ॥ ତ୍ରିମାସ କରି କଣ୍ଟ ଅଛୁ ରାବଣ ଖଣ୍ଡୁ ଦାଶ-ରଥିଙ୍କି ନ ଦେଖିଲେ । ଦଣ୍ଡିବ ସେ ଅଶେଷ ଏ ପ୍ରାଣେ ନାହିଁ ଆଶ କହିବୁ ନାଥଙ୍କୁ ଟି ଭଲେ ରେ । ହନୁମାନ । ଦୁଃଖେ କହନ୍ତ ଦେବୀ ସୀତା । ଦେଖୁଛୁ ବାବୁ ମୋ ଅବସ୍ଥା । ଦମ୍ଭିନୀ କରି ମୁହିଁ ଏତେକ କହିଲଇଁ ଦେଖାଅ ଅଣି ମୋ ହରତା ରେ । ୧୮ । ଧରଣୀରୁ ଜନ୍ମିଲି ଉତ୍ପିତରେ ବଢ଼ିଲି ଧନବନ୍ତର ବୋହୂ ହେଲି । ଧିକ ଜୀବନ ମୋର ଧାତାର ଏ କର୍ମର ଲକ୍ଷ ପ୍ରହର ଚଗୁଅଲୀରେ । ହନୁମାନ । ଧାଇଁ ଅସଇ ଦଶାନନ । ଧିକ୍କାର କହେ କୁବଚନ । ଧିକ୍କାର ବାଣୀଯେତେ କହଇ ସେହି ମୋତେ ସହି ନା ରହୁଛି ଜୀବନ ରେ । ୧୯ । ନିଦ୍ରା ନୀର ଆହାର ସକଳ କଲି ଦୂର ସାର କେବଳ ରାମନାମ । ନଷ୍ଟଯୁ ଯେବେ ମୋର ସତୀପଣଟି ଛୁଇଁର ରାବଣ ମାରିବେ ଶ୍ରୀରାମ ରେ । ହନୁମାନ । ନଶି ଦିବା ସୋଷିଇ ଏହା । ଆସିବେ ପଗ୍ର ମୋର ନାହା । ନେତ୍ର ପିଛୁଳା ମୋର ନମିଷେ ମୋ ଅନ୍ତର ମଣନ୍ତ ଯୁଗ ସମ ଅହା ରେ ॥ ପିତା ଜନକରାଜ ରଚ ରାଜସମାଜ ହରକୋଦଣ୍ଡ ରୁହାଇଲେ । ପୁରୁଷସିଂହ ରାମ କେବଳ ହେଲେ ଷମ ଆନ କେ ଟୁଙ୍ଗି ନ ପାରିଲେ ରେ । ହନୁମାନ । ପରମ ପୁରୁଷ ଶ୍ରୀରାମ । ପରମ ଶୁଦ୍ଧ ତାଙ୍କ ନାମ । ପରମାନନ୍ଦ ପାଦେ ମୋ ରତି ଅପ୍ରମାଦେ ସେହୁ ଖଣ୍ଡିବେ ଅପମାନ ରେ । ୨୧ । ଫୁଲଶଯ୍ୟାରେ ପଢ଼ି ନିଦ୍ରମ କରିଛନ୍ତି ଦୀପ ଅଗ୍ନିରେ ହସ୍ତ ଦେଇ । ଯେଉଁ କହିଲି ଶୁଣ ଯିଠାଇ ମୋର ମନ ଅଛି ସେ ରାଜ୍ଜ ହେବେ ନାହିଁ ରେ । ହନୁମାନ । ଯେଉଁ କହୁଛି ତୋତେ ଏବେ । ଯେଉଁରୁ ନାହିଁ ଅନ୍ୟଠାବେ । ଯେଉଁ କହିବୁ ଯାଇଁ ଏକାନ୍ତ ସ୍ଥାନେନେଇ ତେବେ ସେ ପରତେ କରିବେ ରେ । ହନୁମାନ । ବୋଧିଣ ଶ୍ରୀରାମଙ୍କୁ ବେଗେ ଅଣ ଏଠାରୁ ବିଳମ୍ବ ଆଉ ନ ସହିଇ । ବାରିନିଧି ବନ୍ଧାଇ ବଳଙ୍କୁ ସଙ୍ଗେ ନେଇ ପଶିବେ

ଲଙ୍କାରେ ସଂସାର ରେ । ହନୁମାନ । ବିଶେଷ କି କହୁବି ତୋତେ । ବନ୍ଧୁ ତୁ ଅଛୁରେ ଯୁବତେ । ବଧ୍ନ ନ ଘଟୁ ତୋର ବାବୁ ବାୟୁବ୍ରମର ମିଳ ତୁ ରାମଙ୍କ ଅଗ୍ରତେ ରେ । ହନୁମାନ ।୨୩। ଭବାନୀପାଦେ ଚିତ୍ତ ଦେଇ ସେ ହନୁମନ୍ତ ସୀତାଙ୍କୁ ପ୍ରଦକ୍ଷିଣ କଲା । ଉଚ୍ଚ ମନ୍ତ୍ର ଛଡ଼ଣି ଗିରିଶିଖେ ଉଠିଣ ଆକାଶ ପଥରେ ମିଳ୍ଲା ସେ । ହନୁମାନ । ଶ୍ରୀଷଣ ଶରୀର ଧଇଲା । ଭବଶ୍ରବନା ଦୂର କଲା । ଭକ୍ତବତ୍ସଳ ହରି ପାଦେ ନିର୍ଭର କରି ଗୃହଁ ଗୃହଁ ଅନ୍ତର ହେଲା ସେ । ୨୪ । ମଣି ମସ୍ତକେ ଧରି ମହା ବିକ୍ରମ କରି ମହାନ୍ଦ୍ର ଶିଖରେ ମିଳଇ । ମଜ୍ଜନ ଭବନାରେ ଅନ୍ୟ ସପତ ବୀରେ ଥିଲେ ସେମାନଙ୍କୁ ଭେଟିଲା ସେ । ହନୁମାନ । ମଧ୍ୟରେ ନେଇ ବସାଇଲେ । ମନରେ ସାନନ୍ଦ ହୋଇଲେ । ମନ୍ଦୋଦଧି ତରିଲ ସୀତାଙ୍କୁ ଠାବକଲ ବୋଲି ସମସ୍ତେ ପଚାରିଲେ ସେ । ହନୁମାନ । ଜାମ୍ବବ ପାଦେ ପଡ ଅଙ୍ଗଦଭୂଜେ ଭିଡ଼ି ଅନ୍ୟ ମାନଙ୍କୁ ସମ୍ଭାଷଇ । ଯାଇଥିଲି ମୁଁ ଲଙ୍କା ଦୂର ହେଲା ଅଶଙ୍କା ଅଶୋକବନେ ଛନ୍ତି ରହ ହେ । ବୀରମାନେ । ଜନକନନ୍ଦନୀ ଦେଖିଲି ଜନମ ସୁଫଳ ଲଭିଲି । ଜୀବନ ଧେନକରି ଅଛନ୍ତି ରାମନାମ ଜପିଛନ୍ତି ତାଙ୍କ ଅସୁଖ ହେ । ବୀରମାନେ । ରାମଙ୍କୁ ସ୍ମରି ସ୍ମରି ରଜନୀଦିବା ବାରି ନୟନ୍ତି ବହୁଛି ତାଙ୍କର । ରମଣୀମଣି ଶିରୀ ବଦନଚନ୍ଦ୍ର ପରି ଶୀର୍ଣ୍ଣ ହେଲଣି କଳେବର ହେ । ବୀରମାନେ । ରକ୍ଷ ଦାନବୀ ଜଣେ ଜଣ । ବିକଟରୂପକୁ ଧରଣ । ରଡ଼ି ଦଅନ୍ତି ଘଡ଼ଘଡ଼ରେ ରଡ଼ଭଡ଼ ରକ୍ଷରାଜହିଁ ଚଳେ ପୁଣ ହେ । ବୀରମାନେ । ଲଙ୍କା ଦହିଲି ହେଲେ କପୋଳ ବ୍ରହ୍ମାନଳେ ଅକ୍ଷକୁ ମାରିଲୁ ମାଇଲି । ଲଙ୍କାପତିର ଶିଷ୍ୟ ପାଛଲେ ନାଗପାଶ ଦଇବେ ବନ୍ଧନେ ପଡ଼ିଲି ହେ । ଦୂତମାନେ । ଲମ୍ବ ଯେ ଶତେକ ଯୋଜନ । ସ୍ଥଳାରେ କଲିଁ ଗମନ । ଇଙ୍ଗେ ଅଇଲି ମୁହିଁ କହିତମାହ ହୋଇ ଶ୍ରୀରାମ କରିବ ଦର୍ଶନ ହେ ବୀରମାନେ । ୨୮ । ବେଗେ ବାହାର ହେଲ କିଷ୍କିନ୍ଧ୍ୟାରେ ମିଳିଲି ରାଜା ମଧୁବନ ଭାଙ୍ଗିଲେ । , ବାରତା ସୁଗ୍ରୀ ପାଇ ବୀରମାନଙ୍କୁ ଗୃହିଁ ପୃଛନ୍ତେ ହନୁ

ଜଣାଇଲେ ସେ ଠାକୁରାଣୀ । ବହୁତ କଷ୍ଟେ ଠାବ କଲୁ । ସନ୍ଦେଶ ଘେନି ଲେଉଟିଲୁ । ବାଳି ସାନୁଜ ବାତସୁତ ବୀର ସମସ୍ତ ଚଳାଇ ଧାମ ପାଶେ ମିଳି ସେ । ମହାନନ୍ଦେ । ଶୁଭ ସକୁନମାନ ଦୂରୁ ଦେଖି ଶ୍ରୀରାମ ଜାଣିଲେ କାର୍ଯ୍ୟସିଦ୍ଧ କଲେ । ଶୋକକୁ ତ୍ୟାଗ କରି ସୁଗ୍ରୀବ କରି ଚରି ପାରୁଶେ ବସାଇ ପୁଚ୍ଛିଲେ ହେ । ଦୂତମାନେ । ଶୁଣାଅ ସୀତା ସୁମଙ୍ଗଳ । ଶୁଣି ପ୍ରାଣ ହେଉ ଶୀତଳ । ଶୀଘ୍ରେ ସନ୍ଦେଶମାନ କଲେକ ନିବେଦନ ପ୍ରବଣ ବୀର ହନୁମାନ ସେ ॥ ସାଗର ଶତେଯୁଣ ଲଙ୍ଘି ଲଙ୍କାଭୁବନ ଭ୍ରମି ଅନ୍ଧାରେ ମୁହିଁ ଗଲି । ସମସ୍ତ ଚେଷ୍ଟା ଶେଷେ ସତୀ ଦର୍ଶନ ଅଟେ ଅଶୋକ ବଣିକେ ମିଳିଲି ହେ । ରଘୁନାଥ । ସୀତା ଦେଖିଲି ଶୋକଭରେ । କପୋଳ ନିବେଶି କରରେ । ସହସ୍ରାସୁରୀ ଘେରି ଅଛନ୍ତି ପାଶ ଗୃହ ବନ୍ଦି ସିଂହାସନ ଉପରେ ହେ ରଘୁନାଥ । ୩୧ । ଷଟ୍‌ଚକ୍ରରଶିର ଶଠ ଦୁଷ୍ଟ ନିଷ୍ଠୁର ସ୍ନେହ ପାଳିତ ମଧୁବନ । ସମୁଦେ ନାଶକଲି ସନ୍ତାପ ବଢ଼ାଇଲି ଶୁଣି ତା ମେଘନାଦ ଘେନି ହେ । ରଘୁନାଥ । ନାଗପାଶ ବନ୍ଧନ କଲା । ଅନେକ ମାଡ ମରାଇଲା । ଲାଙ୍ଗୁଳେ ବସ୍ତ୍ର ଗୁଡ଼ାଇ ଦେଲା ଅଗ୍ନି ଲଗାଇ ପୋଡ଼ିଲି ଲଙ୍କା ଭସ୍ମ ହେଲା ହେ । ରଘୁନାଥ । ହନୁ ମସ୍ତକମଣି ଦେଲା ଶ୍ରୀରାମପାଣି ହରଷେ ହରି ତାହା ନେଲେ । ହୃଦେ ଜାନକୀ ସ୍ମୃତି ସନ୍ତୋଷ ହୋଇ ପୁଣି ହନୁକୁ ବହୁ ପ୍ରଶଂସିଲେ ସେ । ହନୁମାନ । ହରିଙ୍କ ମଧ୍ୟେ ଶ୍ରେଷ୍ଠ ତୁହି । ତୋ ସମ ବୀର ଅଛି ନାହିଁ । ହୃଦୟବଲ୍ଲଭୀର ଅଣିଲୁ ସମାଚାର ହରିଲୁ ବ୍ୟଥା କ୍ଲେଶ ପାଇ ନେ ହନୁମାନ ॥ ଛାଡ଼ିଲେ ସ୍ୱ ଚିନ୍ତା ମରିବ ଦଶମଥା ଦ୍ରୋଷ ଦେଉଛିକ ଜଣେ ହସ୍ତ । ଛାର ଏ ଦଶଶିର ବଳ କେତେ ମାତର କ୍ଷଣକେ କରିବଇଁ ହତ ସେ । ରଘୁନାଥ । ଛାଡ଼ିଲେ ହୃଦୟ ଅକୁଳ । କ୍ଷମେ ତରିଲେ ସିନ୍ଧୁଜଳ । କ୍ଷମାସାଗର ପାଦେ ରାମଚନ୍ଦ୍ର ପେ ବନ୍ଦେ ମାଇଲେ ବଣ୍ଡବାର ବାଳ ସେ । ରଘୁନାଥ ।୩୫।

---

# ହନୁମାନ ଓ ସୀତାଙ୍କ ପ୍ରତ୍ୟୁକ୍ତି ଚୋଲି

### ରାଗ—ତୋଡ଼ି ଏକତାଳି

ଶିଂଶପା ବୃକ୍ଷର ଡାଳେ । ହନୁ ମନେ ମନେ ସ୍ମରେ । କଷ୍ଟେ ଏ ଜାନକୀ ଜନକ ନନ୍ଦନୀ ଦେଖିଲଇଁ ବେନି ଡୋଳେ । କି ସ୍ୱରୂପ ବଳେ । ୧ । ଶୁଖିଛି ଚନ୍ଦ୍ରବଦନ । ଝରନ୍ତେ ନୀର ଲୋଚନ । ତେବେହେଁ ଶୋଭାକୁ ଉପମା ଦେବାକୁ ନାହିଁ ନା ହସ୍ତୁଛବନ ॥ ନାରୀରତନ । ୨ । କହୁ କି ନ କରେ ପୁଣି । ଶ୍ରୀରାମଚନ୍ଦ୍ର ଘରଣୀ ଅସୁର ପୁରେ ଅସୁରୀ ଜଗଛନ୍ତି ଜଗତର ଠାକୁରାଣୀ । ରମଣୀମଣି । କହନ୍ତେ ବଂଶାନୁଗୁଣ । ଶୁଭଇ ସତୀ ଶ୍ରବଣ । ତରୁରୁ ଗୃହାନ୍ତେ ମର୍କଟ ଗୋଟାଏ କହେ ରାମ କୀର୍ତ୍ତିଗୁଣ । ସେ ପୁଣ ପୁଣ ॥ କପି କୁ କାହୁଁ ଅଇଲୁ । ଶ୍ରୀରାମ ନାମ ଧଇଲୁ । ହୃଦୟ ମୋହର ଦହନ କାଳରେ ଚନ୍ଦନ ଲେପନ କଲୁ । ଯାହା କହିଲୁ । ହନୁ କହନ୍ତି ଗୋ ମାତ । ଶ୍ରୀରାମଚନ୍ଦ୍ରଙ୍କ ଦୂତ । ଏମନ୍ତ କହିଣ ଚରଣ ତଳରେ ପଡ଼ିଲା ଯାଇଁ ତୁରିତ । ସେ ରାମଦୂତ ॥ ଶ୍ରୀରାମ ମୁଦ୍ରିକା ଦେଲେ । ସଙ୍କେତମାନ କହିଲେ । ତୁମ୍ଭଙ୍କୁ ପୃଥିବୀଯାକ ଖୋଜୁଛନ୍ତି ଅଞ୍ଜନାସୁତ କହିଲେ । ପ୍ରଗଣ୍ଡ ଗଲେ । ୭ । ରାମ କଲେ ବାଲି ହତ । ସୁଗ୍ରୀ ସଙ୍ଗେ ହେଲେ ମିତ । କୋଟି କୋଟି କପି ମୋହର ସମାନେ ହୋଇଛୁଁ ପ୍ରଭୁଙ୍କ ଦୂତ । କହିଲି ସତ ॥ ସମୁଦ୍ର ଡେଇଁ ଅଇଲି । ଲଙ୍କାଗଡ଼ରେ ପଶିଲି । ତୁମ୍ଭ ଶ୍ରୀଚରଣ ଦର୍ଶନ ନ ପାଇ ପ୍ରାଣ ମୁଁ ହରାଇଥିଲି । ଭଲ ଦେଖିଲି । ୯ ॥ ରାମ ମାଲ୍ୟବନ୍ତ ଗିରି । ଶିବିରେ ଛନ୍ତି ବଢେ କରି । ସୁଗ୍ରୀବ ସହିତେ ଅନେକ ମର୍କଟ ବନ ଗିରି ଛନ୍ତି ପୂରି । ସେ ଋକ୍ଷ ହରି । ୧୦ । ଅସ ମୋର କନ୍ଧେ ବସ । ନେଇ ଯିବି ରାମ ପାଶ । ରାବଣ ସହିତେ ମାରନ୍ତି ପ୍ରଭୁଙ୍କ ପ୍ରତିଜ୍ଞା ହୋଇବ ନାଶ । ଦେଖି ସାହସ । ଶୁଣିଣ ଦେବୀ ହରଷ । ହନୁରୁ କହାଇ ଖାଣ । ବୋଇଲେ ଦକ୍ଷି ପ୍ରତାପ କଥା ଶୁଣି ହର୍ଷେ ଦେଲେ ବନାଶ । ଏ ରାମ ରସ ।୧୨।

# ରାମ ବାରତା

## ରାଗ—କାଫି

କହେ ଅଞ୍ଜନାସୁତ ଯୋଡ଼ିଣ ପାଣି । କମଳପତ୍ର ନେତ୍ର ସନ୍ତାପ ଗୋ ଶୁଣିମା ଠାକୁରାଣୀ । ୧ । ତୁମ୍ଭ ବିହୁନେ ଦଶରଥ ନନ୍ଦନ । ଜାଣି ଦିବସେ ମୁଁ ନ ଦେଖିଲି ଗୋ ତାଙ୍କ ନିଦ୍ରା ଭୋଜନ ।୨। ତୁମ୍ଭର ଗୁଣ ଗୁଣନ୍ତି ଅହର୍ନିଶି । ଯେସନେ ଅନୁଦିନେ କ୍ଷୀଣଇ ଗୋ କୃଷ୍ଣପକ୍ଷର ଶଶୀ ।୩। ଖସି ପଡ଼ଇ ଅଙ୍ଗୁଳିର ମୁଦ୍ରିକା । ନୟନୁ ନୀର ଥିର ନୁହଇ ଗୋ ସେ ତ ଝୁରନ୍ତି ଏକା । ୪ । କେତେବେଳେ ବେଳେ ଧନୁ ଶର ଘେନନ୍ତି । କେତେବେଳେ ତୁମ୍ଭ ବହନେ ଗୋ ଧରଣୀରେ ପଡ଼ନ୍ତି ।୫। କେତେବେଳେ ଚନ୍ଦ୍ର ମଣନ୍ତି ତପନ । କେତେବେଳେ ମନ୍ଦ ମରୁତ ଗୋ କୁଳିଶର ସମାନ । ଫେଣପୃ ପିଠାଇ କହି ଠାକୁରାଣୀ । ଯେମନ୍ତେ ମୋତେ ପ୍ରତେ କରିବେ ଗୋ ପ୍ରଭୁ କୋଦଣ୍ଡପାଣି । ୭ । ସନ୍ତକ କରି ଦେଲେ ମସ୍ତକମଣି । ପଣ୍ଡିରଲେ ମୁଁ କିସ କହିବି ଗୋ କହ ସୁମତ ବାଣୀ ।୮। ଅଳ୍ପ ଦିନ କେତେକେ ରାମରାଜନ । ରାବଣକୁ ମାରିଣ ତୁମ୍ଭଙ୍କୁ ଗୋ ନେବେ ଏଥୁ ବହନ । ୯ । ନୁହ ବିକଳ ଚିନ୍ତା ଛଡ଼ ସକଳ । କହଇ ବଣି କର ବିଶ୍ୱାସ ଗୋ ଶୁଭ ହେଉ ସୁଫଳ ।୧୦।

—ସମାପ୍ତ—



ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଗରବଡ଼ୁ, ଶ୍ରୀ ରାଧାରମଣ ପ୍ରେସ,
କଟକ—୧୯୫୭